# ମୂଷା

(କାଳ୍ପନିକ ବିଜ୍ଞାନ କାହାଣୀ)

ବୈଜ୍ଞାନିକ ଜେ.ବି.ଏସ. ହାଲଡ଼େନ୍



ଖୁସିରେ ପଢ଼ିବା ଅଭିଯାନ

ଭାରତ ଜ୍ଞାନ ବିଜ୍ଞାନ ସମିତି

ମୂଷା

ଲେଖକ : ବୈଜ୍ଞାନିକ ଜେ.ବି.ଏସ. ହାଲଡେନ୍
ଭାବାନୁବାଦ : ବିନୟକୃଷ୍ଣ ପଟ୍ଟନାୟକ
ଅଙ୍କନ : ରୋହିତ ସୂପକାର

ପ୍ରକାଶକ : ଭାରତ ଜ୍ଞାନ ବିଜ୍ଞାନ ସମିତି,
ସି-୨, ହାଉସିଂ ବୋର୍ଡ଼ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର - ୩
ଫୋନ୍ - (୦୬୭୪) ୪୭୦୮୯୧.

ଅକ୍ଷରସଜ୍ଜା : ଓରିଜନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର ।
ମୁଦ୍ରଣ

ମୂଲ୍ୟ : ତିନି ଟଙ୍କା
ପ୍ରକାଶ କାଳ : ଜାନୁଆରୀ ପହିଲା ୧୯୯୭

ଏହି ପୁସ୍ତିକାଟିକୁ ଓଡିଶାରେ **ଖୁସିରେ ପଢିବା ଅଭିଯାନ** (Jan Vanchan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଗାଁ ଗହଳିରେ ଲୋକଙ୍କର ପଠନ ରୁଚିକୁ ତେଜିବା ସାଙ୍ଗକୁ ଏକ ପାଠାଗାର ଆନ୍ଦୋଳନ ଚଳାଇବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।

● Original English - Rats by Dr. J.B.S. Haldane ● Oriya Transcreation - Binaya Krushna Pattanayak. ● Published by B.G.V.S., Orissa for Jan Vachan Andolan ● Price - Rs. 3.00 ● Publication Period - 1st January 1997.

ଏକଦା ଜଣେ ଲୋକ ଥିଲେ । ତାଙ୍କ ନାଁ ସ୍ମିଥ୍ । ସେ ଲଣ୍ଡନର ଏକ ସହରରେ ରହୁଥିଲେ । ତାଙ୍କର ଗୋଟିଏ ପରିବା ଦୋକାନ ଥିଲା । ତାଙ୍କର ଚାରିଜଣ ପୁଅ ଥିଲେ । ରଜାଙ୍କ ନାଁ ପରି ସେ ନିଜ ବଡ଼ ପୁଅର ନାଁ ରଖିଥିଲେ ଜର୍ଜ । ବଂଶର ପରମ୍ପରା ଅନୁସାରେ ସେ ବାପାଙ୍କ ଦୋକାନଟି ଚଳାଇବା କଥା । ତେଣୁ ସ୍କୁଲରେ ଅଲଗା ସମୟରେ ସେ ଉଦ୍ଭିଦ ବିଜ୍ଞାନ ଶ୍ରେଣୀକୁ ଯାଉଥିଲା ।

ସେଠାରେ ସେ ୧୫୭ ଜାତିର କୋବି ଓ ୪୪ ଜାତିର ଶାଗ ବିଷୟରେ ଜାଣିଲା । ସେ ପ୍ରାଣୀ ବିଜ୍ଞାନ ଶ୍ରେଣୀକୁ ବି ଯାଉଥିଲା । ଏଠାରେ ସେ କୋବିରେ ଲାଗୁଥିବା ୭୭ ପ୍ରକାରର ସଁବାଳୁଆ ବିଷୟରେ ଜାଣିଲା । ସେ ଆହୁରି ଶିଖିଲା- ସାବୁନ ପାଣିରେ ଧୋଇଲେ ଶାଗୁଆ ରଙ୍ଗର ସଁବାଳୁଆଗୁଡ଼ିକ ବାହାରିଆସନ୍ତି । ଗାରଗାରିଆ ସଁବାଳୁଆଙ୍କ ପାଇଁ ଧୂଆଁପତ୍ର ରସ ଲୋଡ଼ା ହୁଏ । ମାଟିଆ ରଙ୍ଗର ମୋଟା ମୋଟା ସଁବାଳୁଆଗୁଡ଼ିକୁ ଲୁଣିଆ ପାଣି ଦ୍ୱାରା ହିଁ ଅଲଗା କରିହୁଏ । ବଡ଼ ହେଲାବେଳକୁ ସେ ଲଣ୍ଡନର ସବୁଠୁ ଦକ୍ଷ ପରିବା ଦୋକାନୀ ବନିଯାଇଥିଲା । ତା' କୋବିରେ ଗ୍ରାହକମାନେ ଗୋଟିଏ ବି ସଁବାଳୁଆ ଦେଖିବାକୁ ପାଉ ନଥିଲେ ।



କିନ୍ତୁ ସ୍ମିଥ୍‌ଙ୍କର ତ ଗୋଟିଏ ମାତ୍ର ଦୋକାନ ଥିଲା । ତେଣୁ ତାଙ୍କର ଅନ୍ୟ ତିନି ପୁଅ କ'ଣ କରିବେ ? ସେମାନଙ୍କୁ ନୂଆ କାମ ଖୋଜିବାକୁ ପଡ଼ିଲା । ଦ୍ୱିତୀୟ ପୁଅ ନାମ ଥିଲା ଜିମ୍ । ତା'ର ପୂରା ନାଁ ଜେମ୍‌ସ୍ । ସେ ଇଂରାଜୀରେ ଭଲ ପ୍ରବନ୍ଧ ଲେଖୁଥିଲା । ସ୍କୁଲରେ ସେ ସବୁବେଳେ ଏଥିରେ ପୁରସ୍କାର ପାଉଥିଲା । ସେ ଫୁଟବଲ ବି ଭଲ ଖେଳୁଥିଲା । ସ୍କୁଲ ଫୁଟବଲ୍ ଦଳର ସେ କପ୍ତାନ ହୋଇଥିଲା । ସେ ଥିଲା ତାଙ୍କ ଦଳର ହାଫ୍ ବ୍ୟାକ୍ ।



ସେ ବେଶ୍ ଚାଲାକ୍ ଥିଲା । ନୂଆ ନୂଆ କୌଶଳ ପ୍ରୟୋଗ କରିବାରେ ସେ ଜଣେ ଓସ୍ତାଦ ଥିଲା । ସବୁ ଚାଲାକିକୁ ସେ ତା'ର ଶିକ୍ଷକଙ୍କ ଉପରେ ହିଁ ପ୍ରୟୋଗ କରୁଥିଲା । ଦିନେ ସେ ଚକଖଡ଼ି ଭିତରେ ଦିଆସିଲି କାଠିଟିଏ ଭରି ଦେଇଥାଏ । ଏହା ଘରେ ଲାଗୁଥିବା ସାଧାରଣ ଦିଆସିଲି କାଠି ନଥିଲା । ଏହା ଥିଲା ଗୋଟିଏ ରଙ୍ଗୀନ ବାଣ ଦିଆସିଲି କାଠି । କେଉଁଠି ବି ଘଷି ହେଲେ ଏଥିରେ ସହଜରେ ନିଆଁ ଧରିଦିଏ । ଶିକ୍ଷକ କଳାପଟାରେ ଲେଖୁଛନ୍ତି । ଏହା ଜଳିବାରେ ଲାଗିଲା । ପାଞ୍ଚ ମିନିଟ୍ ଯାଏଁ ସେଦିନ ପାଠପଢ଼ା ବନ୍ଦ ରହିଲା ।

ଆଉ ଦିନେ ସେ କାଳି ଦୁଆତରେ ସ୍ପିରିଟ୍ ଢ଼ାଳି ଦେଇଥିଲା । ଶିକ୍ଷକଙ୍କ କଲମ ଜମା ଚାଲିଲା ନାହିଁ । ଦୁଆତଟିରୁ କାଳି ବଦଳାଇବା ପାଇଁ ଟାଙ୍କୁ ଅଧା ଘଣ୍ଟା ଲାଗିଗଲା । ସେ ଦିନର ଘଣ୍ଟାକ ମଧ୍ୟରେ ଫ୍ରେଞ୍ଚ୍ ପ୍ରାୟ ପଢ଼ା ହୋଇପାରିଲା ନାହିଁ । ତାକୁ ଫ୍ରେଞ୍ଚ୍ ଜମା ଭଲ ଲାଗୁ ନଥିଲା । କିନ୍ତୁ ତାଲାର କଣାଟିରେ ଲାଖ ଭରିଦେବା ବା ଶିକ୍ଷକଙ୍କ ଟେବୁଲ ଖୋପରେ ମଲା ମୂଷା ଭରିଦେବା ଭଳି ସାଧାରଣ ଖେଚଡ଼ାମି ସେ କେବେ କରୁ ନଥିଲା ।

ତୃତୀୟ ପୁଅର ନାଁ ଚାର୍ଲସ୍ । ସେ ଗଣିତ ଓ ଇତିହାସରେ ବେଶ୍ ଭଲ କରୁଥିଲା । ସ୍କୁଲ କ୍ରିକେଟ୍ ଦଳର ସେ ଜଣେ ସଭ୍ୟ ଥାଏ । ସେ ଥିଲା ଜଣେ ଧୀର ଗତିର ବାଉଁଆ ବୋଲର୍ । ସେ କେବଳ ରସାୟନ ବିଜ୍ଞାନରେ ଶ୍ରେଣୀରେ ସବୁଠୁ ଭଲ ଛାତ୍ର ଥିଲା । ସ୍କୁଲରେ ସେ ହିଁ ପାରାଡ଼ାଇ ମିଥାଇଲ୍ ଆମିନୋ ବେଞ୍ଜାଲ୍‌ଡ଼ିହାଇଡ୍ ବା, ଏପରିକି ଆରାବିଟଲ୍ ପରି କାଠିକର ରସାୟନ ବନାଇଥିଲା ।



ସେ ଚାହିଁଥିଲେ ସବୁଠୁ ଉତ୍କଟ ଗନ୍ଧ ବି ବନାଇପାରିଥାନ୍ତା ; ସେ ଏହାର ଉପାୟଟି ଜାଣିଥିଲା । କିନ୍ତୁ ଜଣେ ଭଲ ପିଲା ହିସାବରେ ସେ ଏହା କରି ନଥିଲା । ତା' ଛଡ଼ା ଏହା

କରିଥିଲେ ତା' ରସାୟନ ବିଜ୍ଞାନ ପଢ଼ାରେ ବି ପୂର୍ଣଚ୍ଛେଦ ପଡ଼ିଯାଇଥାନ୍ତା । ସେ ଜୀବନସାରା ରସାୟନ ବିଜ୍ଞାନରେ ଗବେଷଣା କରିବାକୁ ଚାହୁଁଥିଲା ।

ଚତୁର୍ଥ ପୁଅ ଜାକ୍ । ସେ ପାଠ କି ଖେଳ କେଉଁଥିରେ ବି ଭଲ କରୁ ନଥିଲା । ସେ ଫୁଟ୍‌ବଲ୍‌ଟାକୁ କେବେ ବି ସିଧା ମାରି ପାରୁ ନଥିଲା । କ୍ରିକେଟ ଖେଳରେ ଫିଲ୍‌ଡ଼ିଂ ବେଳେ ତ ସେ ଘୁମାଇ ପଡୁଥିଲା । ଗୋଟିଏ କାମରେ ହିଁ ସେ ଭଲ କରୁଥିଲା । ତା' ଥିଲା ବେତାର (ୱାଇରଲେସ୍ ) କାମ । ଘରେସେ ଏଥିରୁ ଗୋଟିଏ ବଢ଼ିଆ ସେଟ୍ ନିଜେ ବନାଇଥିଲା । ଏହାର ଭାଲ୍‌ଭ୍‌ଟି ହିଁ ସେ ବନାଇ ନଥିଲା ।



କିନ୍ତୁ ଏହି କାହାଣୀଟି ଆରମ୍ଭ ବେଳକୁ ସେ ସେହି ଭାଲ୍‌ଭ୍‌ଟିକୁ ବନାଇବା ପାଇଁ ଚେଷ୍ଟା ଚଳାଇଥିଲା । ମାତିଲ୍‌ଦା ନାମରେ ତା'ର ଜଣେ ବୁଢ଼ୀ ମାଉସୀ ଥିଲେ । ସେ ଅତି ବୁଢ଼ୀ ହୋଇଯାଇଥିଲେ । ସେ ଅନେକ କଥା ଆଉ ମନେ ପକାଇ ପାରୁ ନଥାନ୍ତି । କେବଳ ପ୍ରଥମେ ରେଳରାସ୍ତା ବନାଯିବା କଥା ହିଁ ସେ ମନେ ପକାଇ ପାରୁଥିଲେ । ସେ ଆଉ ଚାଲି ପାରୁ ନଥିଲେ । ଦିନସାରା ସେ ସେପରି ବିଛଣାରେ

ହିଁ ପଡ଼ି ରହୁଥିଲେ । ସେ ଶୁଣିପାରିବା ପାଇଁ ଜାକ୍ ତାଙ୍କ ପାଇଁ ହଳେ କାନ୍‌ଫୋନ୍ ବନାଇ ଦେଇଥିଲା । ସେ ଅତି ଖୁସି ହୋଇଯାଇଥିଲେ । କହି ପକାଇଥିଲେ ଯେ ସେ କୁଆଡ଼େ ରାଣୀ ଭିକ୍ଟୋରିଆଙ୍କ ସମୟରେ ହିଁ ଏପରି ଅଧିକ ଖୁସି ଥିଲେ । ଏହାଛଡ଼ା ଜାକ୍ ଅନ୍ୟାନ୍ୟ ବିବିଧ ବିଜୁଳି ଉପକରଣ ବି ବନାଉଥିଲା ।

ଥରେ ସେ ତାଙ୍କ ଘରର ବିଜୁଳି ମିଟରଟିକୁ ଅଚଳ କରିଦେଲା । ବିଜୁଳିବତୀ ଜଳିଲା; କିନ୍ତୁ ମିଟର ଉଠିଲା ନାହିଁ । ତା' ବାପା ଏ କଥା ଜାଣିପାରିଲେ । ସେ କହିଲେ -" ଆମେ ଏପରି କରିବା ଠିକ୍ ନୁହେଁ । ଆମେ ଏହା ଦ୍ୱାରା ବିଜୁଳି ବିଭାଗଠୁଁ ଚୋରି କରୁଛେ ।" ଜାକ୍ ସାଙ୍ଗେ ସାଙ୍ଗେ କହିଲା, " ମୁଁ କିନ୍ତୁ ଭାବୁଛି, ଏହା ଚୋରି ନୁହେଁ । ବିଜୁଳି ବିଭାଗଟା କୌଣସି ଲୋକ ନୁହେଁ । ବିଜୁଳି କରେଣ୍ଟ ଆମ ବତୀକୁ ଛୁଇଁ ପୁଣି ମୂଳ ଲାଇନ୍‌କୁ ଫେରିଯାଉଛି । ଆମେ ତ ଏହାକୁ ରଖୁନାହେଁ । କେବଳ ଆଣି ଫେରାଇଦେଉଛେ ।" କିନ୍ତୁ ତା' ବାପା ସଚ୍ଚୋଟ ଲୋକ ଥିଲେ । ସେ ତାକୁ ଏହାକୁ ବଦଳାଇବାକୁ ବାଧ୍ୟ କଲେ । ବିଜୁଳି ବିଭାଗକୁ ସେ ଉଚିତ ମୂଲ୍ୟ ଦେଇଦେଲେ ।

ସ୍ମିଥ୍‌ଙ୍କର ଝିଅଟଏ ଥିଲା । ତା' ନାଁ ଲୁସାଇଲ୍ । ତାକୁ କିନ୍ତୁ ସଭିଏଁ 'ପୁଜି' ବୋଲି ଡ଼ାକୁଥିଲେ । ଏହି କାହାଣୀରେ ତା'ର କୌଣସି ଭୂମିକା ନାହିଁ । ତେଣୁ ମୁଁ ତା' ବିଷୟରେ ଏଠାରେ ଅଧିକ କିଛି କହିବି ନାହିଁ । କେବଳ ଏତିକି କହିବି ଯେ, ପିଲାଦିନେ ତା'ର ଆଗ ଦାନ୍ତଗୁଡ଼ିକ ଆଗକୁ ବାହାରି ଆସିଥିଲା । କିନ୍ତୁ ସେମାନେ ସେଗୁଡ଼ିକୁ ତାରରେ ଭିଡ଼ି ଭିତରପଟେ ରଖାଯାଇଥିଲା ।

ଏହି ସମୟରେ ଲଣ୍ଡନର ବନ୍ଦର ଅଞ୍ଚଳରେ ଭୟଙ୍କର ଭାବେ ପ୍ଲେଗ୍ ରୋଗ ବ୍ୟାପିଥିଲା । ଏଠାକାର ମୂଷାଗୁଡ଼ିକ ଭାରି ଦୁର୍ଦ୍ଦାନ୍ତ ଥିଲେ । ହଂକଂରୁ ଚାହା, ଅଦା, ରେଶମ ଓ ଚାଉଳ ସହ ଏମାନଙ୍କ ପୂର୍ବଜମାନେ ସେଠାକୁ ଜାହାଜରେ ଚାଲି ଆସିଥିଲେ । ସେତେବେଳେ ଇଂଲଣ୍ଡରେ ସମସ୍ତଙ୍କ ପାଇଁ ଯଥେଷ୍ଟ ଚାଷ ହୋଇ ପାରୁ ନଥିଲା । ବନ୍ଦରକୁ କାନାଡ଼ାରୁ ଗହମ, ହଲାଣ୍ଡରୁ ଲହୁଣୀ, ନିଉଜିଲାଣ୍ଡରୁ ଛେଳି ମାଂସ ଓ ଆର୍ଜେଣ୍ଟିନାର ଗାଈ ମାଂସ ଆସୁଥିଲା । ଏହି ମୂଷାମାନେ ଏସବୁ ଖାଇ ଯାଉଥିଲେ । ପାର୍ସି ଗାଲିଚାର ମଝିରୁ ପୁଳାଏ ଲେଖାଏଁ କାଟିନେଇ ସେମାନେ ତାଙ୍କ ପାଦ ପୋଛୁଥିଲେ ।

ଲଣ୍ଡନର ସବୁଠକ ବନ୍ଦରର ମୁଖ୍ୟଙ୍କୁ ଲଣ୍ଡନ ବନ୍ଦର କର୍ତ୍ତୃପକ୍ଷଙ୍କ ଅଧ୍ୟକ୍ଷ କୁହାଯାଇଥାଏ । ତାଙ୍କର ଯଥେଷ୍ଟ ବେଶୀ କ୍ଷମତା ଥାଏ । ତାଙ୍କ ଅଫିସ୍‌ଟି ବିଶାଳ ସ୍ତମ୍ଭ ନିକଟରେ ଅଛି । ଆକାରରେ ଏହା ରାଣୀଙ୍କ ପ୍ରାସାଦ ସହ ପ୍ରାୟ ସମାନ । ଅଧ୍ୟକ୍ଷ ମୂଷାଙ୍କ ଉପରେ ପ୍ରଚଣ୍ଡ ରାଗିଯାଇଥିଲେ । କାରଣ ଜାହାଜରୁ ଓହ୍ଲାଯିବା ପରେ ମାଲ୍‌ଗୁଡ଼ିକୁ ରେଳ, ଟ୍ରକ୍ ବା ଶଗଡ଼ରେ ଲଦି ନିଆଯିବା ଯାଏଁ ମାଲ୍‌ର ଯତ୍ନ ନେବା ତାଙ୍କର ଦାୟିତ୍ୱ ଥିଲା । ମୂଷା ଖାଇଯାଉଥିବା ଜିନିଷର ମୂଲ୍ୟ ତାଙ୍କୁ ଦେବାକୁ ପଡୁଥିଲା ।

ସେ ଲଣ୍ଡନର ସବୁଠୁ ଭଲ ମୂଷାଧରାଳୀମାନଙ୍କୁ ଡ଼କାଇଲେ । କିନ୍ତୁ ସେମାନେ ମାତ୍ର କେତେ ଶହଟି ମୂଷାଙ୍କୁ ଧରିପାରିଲେ । କାରଣ ଏହି ମୂଷାମାନେ ବେଶ୍ ଚାଲାକ୍ ଜାତିର ଥିଲେ । ସେମାନଙ୍କର ଜଣେ ରାଜା ଥିଲା । ସେ ଗୋଟିଏ ଅତି ଗହିରିଆ ଗାତରେ ରହୁଥିଲା । ଅନ୍ୟ ମୂଷାମାନେ ତା' ପାଇଁ ବାଛି ବାଛି ଭଲ ଖାଦ୍ୟ ସବୁ ଆଣି ଦେଉଥିଲେ ।



ସେମାନେ ତା' ପାଇଁ ସୁଇଜରଲ୍ୟାଣ୍ଡରୁ ଆସିଥିବା ଚକୋଲେଟ୍, ଫ୍ରାନ୍ସର କୁକୁଡ଼ା ମାଂସ, ଆଲ୍‌ଜିରିଆର ଖଜୁରୀ, ଆଦି ବୋହି ଆଣୁଥିଲେ । ସେ ସେଠାରେ ବସି ମୂଷାମାନଙ୍କୁ ବାଟ ବତାଉଥିଲା । କୌଣସି ମୂଷା ଯନ୍ତାରେ ପଡ଼ିଗଲେ ସେ ଅନ୍ୟମାନଙ୍କୁ ଏହା ସୂଚାଇ ଦେଉଥିଲା । ସେ ସ୍ୱତନ୍ତ୍ର ଦୂତମାନଙ୍କୁ ପଠାଉଥିଲା । ତା' ଦଳଟିରେ ପ୍ରାୟ ଦଶହଜାର ସଭିକି ସାହସୀ ଯୁବକ ମୂଷା ଥିଲେ । ତାଙ୍କୁ କେହି ଆକ୍ରମଣ କଲେ ସେମାନେ ସମସ୍ତେ ମିଶି ତାକୁ ଓଲଟା ଆକ୍ରମଣ କରୁଥିଲେ ।

ଶିକାରୀଟି ଅତି ବେଶୀରେ ତିନି ଚାରୋଟି ମୂଷାଙ୍କୁ ସହଜରେ ମାରି ଦେଇପାରେ । କିନ୍ତୁ ଶହେ ହବ ମୂଷା ଯଦି ଏକାଠି ତା' ଉପରକୁ କୁଦି ପଡ଼ିବେ, ତେବେ ସେ ବିଚରାଟି ମଲା ! ଯେଉଁ ମୂଷାମାନଙ୍କର ଦାନ୍ତ ଶକ୍ତ ଥିଲା, ସେମାନେ ଇଞ୍ଜିନିୟର ରୂପେ ତାଲିମ ନେଉଥିଲେ । ସେମାନେ ମୂଷା ଯନ୍ତାକୁ କାଟି ବନ୍ଦୀ ଥିବା ମୂଷାଙ୍କୁ ମୁକୁଳାଇ ନେଇ ଆସୁଥିଲେ । ମାସକ ମଧ୍ୟରେ ସେମାନେ ଶହେ ଅଶୀଟି ବିଲେଇ, ଅଣଚାଶଟି କୁକୁର ଓ ପଞ୍ଚାନବେଟି ନେଉଳଙ୍କୁ ମାରିଦେଲେ । ଅନ୍ୟମାନଙ୍କୁ ବି ସେମାନେ ଗୁରୁତର ଭାବେ ଖଣ୍ଡିଆ ଖାବରା କରି ପକାଇଲେ ।



ସେମାନେ ମୂଷା ଦେଖିବା ତ ଦୂରର କଥା, ମୂଷା ବାସନା ବାଜିଲେ ହିଁ ଦଉଡ଼ିବାରେ ଲାଗିଲେ । ମୂଷାମାନେ ୬୧୮ଟି ଯନ୍ତାରୁ ୭୪୨ ଜଣ ବନ୍ଦୀ ମୂଷାଙ୍କୁ ମୁକୁଳାଇ ନେଲେ । ତାଙ୍କର ସର୍ବୋତ୍ତମ କୁକୁର, ନେଉଳ ଓ ଯନ୍ତାକୁ ହରାଇ ମୂଷାଧରାଳୀମାନେ ନିରାଶ ହୋଇଗଲେ । ସେମାନେ ଏହି କାମରୁ ଓହରିଗଲେ । ବନ୍ଦର କର୍ତ୍ତୃପକ୍ଷ ଏଥର ସବୁ ଔଷଧ ଦୋକାନରେ ସବୁରକମର ମୂଷାମରା ଔଷଧ ଖୋଜିଚାଲିଲେ । ବିଭିନ୍ନ ପ୍ରକାରର ଖାଦ୍ୟରେ ଗୋଳାଇ ସେମାନେ ଏଗୁଡ଼ିକୁ ଏଣେତେଣେ ପକାଇ ଦେଲେ ।

ମୂଷାରାଜା ଆଦେଶ ଦେଲା - ନୂଆ ବାକ୍ସ, ପିପା, ମୁଣି ଭିତର ଖାଦ୍ୟ ଛଡ଼ା ଅନ୍ୟ କୌଣସି ଖାଦ୍ୟକୁ କେହି ବି ଛୁଇଁବ ନାହିଁ । ତେଣୁ କେତୋଟି ଅମାନିଆ ମୂଷା ହିଁ ଏହି ବିଷର ଶିକାର ହୋଇଥିଲେ । ମଲା ମୂଷାଙ୍କୁ ଦେଖି ଅନ୍ୟମାନେ କୁହାକୁହି ହେଲେ - କଥା ନ ମାନିବାର ଫଳ ଏଇଆ । ଆଗର କୁକୁର, ନେଉଳ ଓ ଯନ୍ତାଠାରୁ ବିଷ କିଛି ଅଧିକା ବାମ କରିପାରିଲା ନାହିଁ ।

ଶେଷକୁ ଅଧ୍ୟକ୍ଷ ବିଚଳିତ ହୋଇପଡ଼ିଲେ । ସେ ତାଙ୍କର ବିରାଟକାୟ ସଭାଘରେ ତାଙ୍କର ସବୁ କର୍ମକର୍ତ୍ତାଙ୍କର ଏକ ସଭା କଲେ । ସେ ପଚାରିଲେ ଏହି ମୂଷାମାନଙ୍କୁ ମାରିବା ପାଇଁ ଆଉ କ'ଣ କରାଯାଇପାରେ ? ଉପାଧ୍ୟକ୍ଷ ପରାମର୍ଶ ଦେଲେ - ଆମେ ଖବର କାଗଜଗୁଡ଼ିକରେ ଏହା ବିଷୟରେ ବିଜ୍ଞାପନ ଦେବା । ପର ସପ୍ତାହରେ ସବୁ ଖବର କାଗଜରେ ବିଜ୍ଞାପନ ବାହାରିଲା । ଖବର କାଗଜଗୁଡ଼ିକର ଗୋଟିଏ ପୂରା ପୃଷ୍ଠାରେ ଏହି ବିଜ୍ଞାପନ ଛପା ଥାଏ । ଲଣ୍ଡନ୍ ସାରା ଲୋକ ଏହାକୁ ପଢ଼ିଲେ । ସ୍ମିଥ୍‌ଙ୍କ ପରିବାରରେ, କେବଳ ମାତିଲ୍‌ଦାଙ୍କୁ ଛାଡ଼ି ସମସ୍ତେ ଏହାକୁ ପଢ଼ିଲେ । ମାତିଲ୍‌ଦା ରେଡ଼ିଓରୁ ହିଁ ଖବର ଶୁଣୁଥିଲେ ।

ଏହି ବିଜ୍ଞାପନଟି ଅତି ମନଛୁଆଁ ଥିଲା । ଏହା ଆଗରେ ଖବର କାଗଜର ବାକି ସବୁ ପ୍ରତିଯୋଗିତା ସମ୍ପର୍କୀୟ ଘୋଷଣା ଗୌଣ ମନେ ହେଲା । ବନ୍ଦର ଅଧ୍ୟକ୍ଷ ଘୋଷଣା କରିଥିଲେ ଯେ, ବନ୍ଦରକୁ ମୂଷାମୁକ୍ତ କରିବା ଲୋକଙ୍କୁ ଏକ ଲକ୍ଷ ପାଉଣ୍ଡ (ପ୍ରାୟ ପଚାଶ ଲକ୍ଷ ଟଙ୍କା) ସହିତ ସେ ନିଜର ଏକୋଇ ଝିଅକୁ ତାଙ୍କ ସହ ବାହା ଦେବେ ।

ବିଜେତା ଯଦି ବିବାହିତ ହେଇଥିବେ, ତେବେ ସେ ନିଜ ଝିଅକୁ ବାହା ଦେବେ ନାହିଁ । ବିଜେତାଙ୍କ ସ୍ତ୍ରୀଙ୍କୁ ହୀରାମାଳିଟିଏ ସେ ସାନ୍ତ୍ୱନା ପୁରସ୍କାର ଦେବେ । ବିଜ୍ଞାପନଟିରେ ଲକ୍ଷେ ପାଉଣ୍ଡ ଅର୍ଥର ଏକ ଫଟୋ ବି ଦିଆଯାଇଥିଲା । ଏହା କାଗଜର ନୋଟ୍ ନ ଥିଲା । ବରଂ ଏହା ଥିଲା ଇଂଲଣ୍ଡର ପ୍ରଧାନ ସ୍ୱର୍ଣ୍ଣମୁଦ୍ରା । ଏଥି ସହ ଅଧ୍ୟକ୍ଷଙ୍କ ସୁନ୍ଦରୀ ଝିଅର ଫଟୋଟି ବି ଛପାଯାଇଥିଲା । କୁଞ୍ଚୁକୁଞ୍ଚିଆ ବାଳ ସାଙ୍ଗକୁ ଝିଅଟିର ନୀଳ ଆଖି ଦୁଇଟି ଖୁବ୍ ସୁନ୍ଦର ଦେଖାଯାଉଥାଏ । ସେ ବେହେଲା ବି ବଜାଇ ପାରୁଥିଲା। ରୋଷେଇ, ସନ୍ତରଣ ଓ ସ୍କେଟ ଖେଳରେ ବି ସେ ଅନେକ ପୁରସ୍କାର ପାଇଥିଲା ।

ଏହି ପ୍ରତିଯୋଗିତାରେ କେବଳ ଗୋଟିଏ ଅସୁବିଧା ଥିଲା । ମୂଷା ମାରିବା ପାଇଁ ପ୍ରତିଯୋଗୀମାନଙ୍କୁ ନିଜ ଶିକାର-ସାମାନ ଆଣିବାକୁ ପଡୁଥିଲା । ତେଣୁ ପ୍ରତିଯୋଗିତାରେ ଭାଗ ନେବା ପାଇଁ ବେଶ୍ କିଛି ଅର୍ଥ ବି ଲୋଡ଼ା ଥିଲା ।

ତଥାପି ହଜାର ହଜାର ଲୋକ ଆସିଲେ । ତା'ପର ଦିନ ସକାଳେ ଅଧ୍ୟକ୍ଷଙ୍କ ପାଖରେ ତାଙ୍କର ଆବେଦନ ପତ୍ର ପହଞ୍ଚିବା ଦରକାର ଥିଲା । କିନ୍ତୁ ଏତେ ଲୋକ କିପରି ଚିଠି ପହଞ୍ଚାଇବେ ? ଏଥିପାଇଁ ସେମାନେ ତିନି ଜଣ ଅତିରିକ୍ତ ଡ଼ାକବାଲାଙ୍କ ସହାୟତା ଲୋଡ଼ିଥିଲେ । ଟେଲିଫୋନ୍ ଯୋଗେ ବି ଏତେ ଲୋକ ଯୋଗାଯୋଗ କଲେ ଯେ, ଅଧ୍ୟକ୍ଷଙ୍କ ଟେଲିଫୋନ ତାର ତରଳିଗଲା । ମାସ ମାସ ଧରି ଲୋକମାନେ ତାଙ୍କ ଭାଗ୍ୟ ପରୀକ୍ଷା କରି ଚାଲିଲେ । ତାଙ୍କ ଭିତରେ କିଏ ଥିଲେ ରସାୟନ୍‌ବିତ୍ ତ କିଏ ଥିଲେ ଯାଦୁକର । କିଏ ବୀଜାଣୁ ବିଷାରଦ ତ କିଏ ଗୁଣିଆ । କିଏ ପୁଣି ପ୍ରାଣୀ ବିଜ୍ଞାନୀ ତ କିଏ ଥିଲେ ଆଧ୍ୟାତ୍ମିକବାଦୀ ବା ସିଂହଶିକାରୀ । କିନ୍ତୁ କେହି ବି ଅଳ୍ପ କିଛି ମୂଷାରୁ ବେଶୀ ମୂଷା ଶିକାର କରିପାରିଲେ ନାହିଁ । ବରଂ ଏହି ପ୍ରତିଯୋଗିତା ଯୋଗୁଁ ମାଲ୍‌ବୁହା କାମ ବିଶେଷ ବାଧା ପାଇଲା । ଲଣ୍ଡନ ବନ୍ଦରରେ ଅନ୍ୟାନ୍ୟ ବନ୍ଦରଗୁଡ଼ିକରେ ମାଲ୍ ରପ୍ତାନୀ ବଢ଼ିଗଲା ।

ଏହି ପ୍ରତିଯୋଗିତାରେ ଜିମ୍ , ଚାର୍ଲସ୍ ଓ ଜାକ୍ ସ୍ମିଥ୍ ମଧ୍ୟ ତାଙ୍କର ଭାଗ୍ୟ ପରୀକ୍ଷା କଲେ । ଜିମ୍ ଭାବିଲା, ସେ ସାଧାରଣ ମନେ ହେଉଥିବା ଯନ୍ତ୍ରଟିଏ ବନାଇବ । ସ୍କୁଲରେ ଶିକ୍ଷକଙ୍କୁ ବୋକା ବନାଇଲା ଭଳି, ମୂଷାମାନଙ୍କୁ ବି ସେ

ଠକି ଦେଇପାରିବ । ତା'ର ମନେ ପଡ଼ିଗଲା ଯେ, ବନ୍ଦରରେ ଅନେକ ପୁରୁଣା ଟିଣ ଡ଼ବା ପଡ଼ିଥିଲା । ଗୋଟିଏ ପୁରୁଣା ଟିଣରେ ସେ ଏକ ବିଶେଷ ଧରଣର ଯନ୍ତା ବନାଇଲା । ଏହାକୁ ସେ ଘରେ ରଖିଲା ।



ମୂଷାମାନେ ଏହା ଭିତରେ ଥିବା ଖାଦ୍ୟର ବାସନା ଶୁଙ୍ଘି ଯନ୍ତା ଉପରକୁ ଡ଼େଇଁଲେ । କିନ୍ତୁ ଯନ୍ତାଟିର ଉପରେ ଏକ ଏକ ଢ଼ିଲା କବାଟ ଥିଲା । ସେମାନେ ଯନ୍ତା ଭିତରକୁ ଗଳି ପଡ଼ିଲେ । ଆଉ ବାହାରି ପାରିଲେ ନାହିଁ । ଜିମ୍ ଛୁଟିବେଳେ ତା'ର ସାଙ୍ଗମାନଙ୍କୁ ଡ଼ାକିଲା ।

ସମସ୍ତେ ମିଶି ଏପରି ଯନ୍ତା ବନାଇବାରେ ଲାଗିପଡ଼ିଲେ । ସେ ବାପାଙ୍କ ଠାରୁ ଦଶ ପାଉଣ୍ଡ ଅର୍ଥ ମାଗିଆଣିଲା । ବିଲ୍ ଜନ୍‌ସନ୍ ନାମକ ଜଣେ କମାର ଥିଲେ । ତାଙ୍କର ବିଶେଷ କିଛି କାମ୍‌ଦାମ ନ ଥିଲା । ତାଙ୍କ ସାହାଯ୍ୟ ନେଇ ଜିମ୍ ଏପରି ଯନ୍ତା ବନାଇଚାଲିଲା । ସେ ଏପରିକା ଏକ ହଜାର ତିନିଶହ ଚଉରାନବେଟି ଯନ୍ତା ବନାଇଲା । ଏଥିରୁ ୧୭ଟି ଖରାପ ଥିଲା । ସେ ଏଗୁଡ଼ିକୁ ବନ୍ଦରକୁ ନେଲା ନାହିଁ ।

ବାପାଙ୍କର ଗୋଟିଏ ଶଗଡ଼ରେ ଯନ୍ତା ସବୁ ଲଦା ହେଲା । ସେ ଏଥର ବନ୍ଦର ଅଞ୍ଚଳକୁ ଗଲା । ବନ୍ଦର ଉପାଧ୍ୟକ୍ଷ ଏହି ମୂଷାଧରା ଅଭିଯାନଟିର ତଦାରଖ କରୁଥାଆନ୍ତି । ସେ କହିଲେ - ଏତିକି ଯନ୍ତା ଚ ପୂରା ବନ୍ଦରକୁ ପାଇବ ନାହିଁ । ଗୋଟିଏ ଭାଗରେ ଏ ସବୁକୁ ବସାଇବା । ସେମାନେ ବନ୍ଦରର ଗୋଟିଏ ଅଂଶରେ (ୱେଷ୍ଟ ଇଣ୍ଡିଆ ବନ୍ଦରରେ ) ହିଁ ପ୍ରୟୋଗଟି ଚଳାଇଲେ ।

ଜାମାଇକା ପାଖାପାଖି ଦ୍ୱୀପରୁ ଚିନି, ମଦ, ଗୁଡ଼ ଓ କଦଳୀ ନେଇ ଜାହାଜ ସବୁ ଏଠାକୁ ଆସୁଥିଲା । ମୋ ମତରେ ମୂଷାଧରିବା ପାଇଁ ଏ ଜାଗାଟି ଠିକ୍ ନ ଥିଲା । ଏଠାରେ ମୂଷାଗୁଡ଼ିକ ବେଶୀ ଟାଣୁଆ ଓ କ୍ଷୀପ୍ର ଥିଲେ । କାରଣ ସେମାନେ ସବୁବେଳେ ବଡ଼ ବଡ଼ ପିପା, କୁଣ୍ଡ, ମାଠିଆ ଆଦିକୁ ଡ଼େଉଁଥିଲେ । ମାନ୍ଦା ମୂଷାଗୁଡ଼ିକ ଏ ଭିତରୁ ଉଠି ନ ପାରି ବନ୍ଦୀ ହୋଇଯାଉଥିଲେ ଓ ମରିଯାଉଥିଲେ । କେବଳ ଦ୍ରୁତ ମୂଷାଗୁଡ଼ିକ ହିଁ ରକ୍ଷା ପାଉଥିଲେ । ଏମାନେ ବେଶ୍ ଦ୍ରୁତ ଓ ଭଲ ଚଢ଼ାଳୀ ଥିଲେ ।

କିମ୍‌ର ଅଧା ଯନ୍ତାରେ ଲହୁଣୀ ଓ ଆଉ ଅଧାକରେ ଶୁଖିଲା ଘୁଷୁରୀ ମାଂସ ରଖାଯାଇଥିଲା । ପ୍ରଥମ ରାତିରେ ନଅ ଶହ ଅଠରଟି ମୂଷା ଧରାପଡ଼ିଲେ । କିମ୍ ବହୁତ ଖୁସି ଥିଲା । ସେ ମନେ ମନେ ଭାବିଲା ପୁରସ୍କାରଟି ସେ ପାଇଯିବ । କିନ୍ତୁ .... ତା' ପର ରାତିରେ ସେମାନେ ମାତ୍ର ତିନୋଟି ମୂଷା ଧରିପାରିଲେ । ତୃତୀୟ ରାତିରେ ମାତ୍ର ଦୁଇଟି । ମୂଷାରାଜା ଆଦେଶ ଦେଇଥିଲା - କେହି ବି ଟିଣ ପାଖକୁ ଯିବ ନାହିଁ । କେବଳ ଅମାନିଆ, ଖେଚଡ଼ ମୂଷାଗୁଡ଼ିକ ହିଁ ଧରାପଡ଼ିଲେ ।

ଚତୁର୍ଥ ରାତିରେ ସେମାନେ ବନ୍ଦରର ଆଉ ଏକ ଭାଗ (ଭିକ୍ଟୋରିଆ ବନ୍ଦର ) ରେ ଯନ୍ତା ବସାଇଲେ । କିନ୍ତୁ ସେଠାରେ ସେମାନେ ମାତ୍ର ଚାରିଟି ମୂଷା ପାଇଲେ । ସତର୍କ ସୂଚନାଟି ସବୁଆଡ଼େ ପହଞ୍ଚିସାରିଥିଲା । ତେଣୁ କିମ୍ ମନଦୁଃଖରେ ଘରକୁ ଫେରିଲା । ସେ ଏଥିରେ ଅନେକ ସମୟ ଓ ଦଶ ପାଉଣ୍ଡ୍ ବି ଖର୍ଚ୍ଚ କରିଥିଲା । ସ୍କୁଲରେ ସମସ୍ତେ ତାକୁ ଚିଡ଼ାଇଲେ : ଟିଣେ ମୂଷା ।

ଚାର୍ଲ୍‌ସ ସ୍ମିଥ୍‌ର ଯୋଜନା ବେଶ୍ ଅଲଗା ଥିଲା । ସେ ଏପରିକା ବିଷଟିଏ ବାହାର କଲା, ଯାହାର କିଛି ବି ସ୍ୱାଦ କି ଗନ୍ଧ ନ ଥିଲା । ଏହା କ'ଣ ଥିଲା, କିପରି

.ବନାଯାଇଥିଲା - ମୁଁ ତୁମକୁ ଏସବୁ ବିଷୟରେ କିଛି ବି କହିବି ନାହିଁ । କାରଣ କୌଣସି ଘାତକ ଯଦି ଏହା ଜାଣିଯାଏ, ତେବେ ସେ ସବୁ ଲୋକଙ୍କୁ ମାରି ପକାଇବ । ସେ ଏହି ବିଷରୁ ଯଥେଷ୍ଟ ତିଆରି କଲା । ସେ ଆଉ ଏକ ଜିନିଷ ବି ତିଆରି କଲା ।

ଏହା ଏକ ଭଲମାନର (ରକ୍‌ଫର୍ଟ) ଲହୁଣୀ ପରି ବାସୁଥିଲା । ରକ୍‌ଫର୍ଟ ଲହୁଣୀ ଫ୍ରାନ୍‌ସ୍‌ର ଏକ ବିଶେଷ ପ୍ରକାରର ଲହୁଣୀ । ଏହି ଜିନିଷଟିର ନାଁ ମିଥାଇଲ୍ ହେପ୍‌ଟା ଡ଼େକାଇଲ୍ କିଟୋନ୍ । ଏହାର ବାସନାଟି ଖୁବ୍ ମଧୁର । ଅନେକ ଲୋକଙ୍କୁ ଏହା ଭଲ ଲାଗେ ନାହିଁ । କିନ୍ତୁ ଏହା ମୂଷାଙ୍କର ଅତି ପ୍ରିୟ । ଚାର୍ଲସ୍ ବାପାଙ୍କ ଠାରୁ ବୋଡ଼ିଏ ପାଉଣ୍ଡ ଆଣିଥିଲା । ଏଥିରେ ସେ ଶହେଟି ଶସ୍ତା ଓ ବିପଦଜନକ ଲହୁଣୀ ତିଆରି କଲା ।

ପ୍ରତ୍ୟେକକୁ ସେ ଶହେ ଖଣ୍ଡ କରି କାଟିଦେଲା । ଏଗୁଡ଼ିକୁ ସେ ପ୍ରଥମେ ବିଷରେ ବତୁରାଇଲା । ତା'ପରେ ତାହାକୁ ସେ ରକ୍‌ଫର୍ଟ ଲହୁଣୀ ବୁଡ଼ାଇଲା । ଦଶ ହଜାରଟି ଅଲଗା କାଗଜ ପେଟିରେ ସେ ଏଗୁଡ଼ିକୁ ରଖିଦେଲା । ସେ ଭାବିଲା, ଏପରି କଲେ ମୂଷାମାନେ ଏହାକୁ କୌଣସି ସାଧାରଣ ବିଷମିଶା, ଖୋଲା ଖାଦ୍ୟ ମନେ କରିବେ ନାହିଁ । ଏହାକୁ ସେମାନେ କୌଣସି ବିପଦପୂର୍ଣ୍ଣ ପେଟି ବୋଲି ବି ଭାବିବେ ନାହିଁ । କିନ୍ତୁ କାଗଜପେଟି ହେତୁ ସେମାନେ ସହଜରେ ଏହା ଭିତରେ ପଶି ଯାଇ ପାରିବେ । ଦଶହଜାରଟି ଲହୁଣୀ ପେଟିକୁ ବନ୍ଦରର ବିଭିନ୍ନ ଜାଗାରେ ରଖିବା ପାଇଁ ଦୁଇଜଣ ଲୋକଙ୍କୁ ପୂରା ଦୁଇ ଦିନ ଲାଗିଗଲା । ଚାର୍ଲସ୍ ଗୋଟିଏ ପିଚକାରୀ ଧରି ସେମାନଙ୍କ ପଛେ ପଛେ ଚାଲିଥାଏ । ସେ ପେଟିଗୁଡ଼ିକ ଉପରେ ପୁଳାଏ ଲେଖାଁ ଲହୁଣୀ ସିଞ୍ଚି ଦେଉଥାଏ ।

ସେ ଦିନ ଉପରବେଳା ପୂର୍ବ ଲଣ୍ଡନ୍‌ର ସେହି ବନ୍ଦର ଅଞ୍ଚଳଟିରେ ଲହୁଣୀ ବାସନା ମହକି ଉଠିଲା । ସୂର୍ଯ୍ୟ ଅସ୍ତ ହେଲେ । ମୂଷାମାନେ ଗାତରୁ ବାହାରିଲେ । ନିଜ ନିଜ ଭିତରେ ସେମାନେ କୁହାକୁହି ହେଲେ - " ଏହା ନିଶ୍ଚୟ ବଢ଼ିଆ ଲହୁଣୀ ହୋଇଥିବ । ପେଟିଗୁଡ଼ିକ କେତେ ଛୋଟ ! ଅଥଚ ଏହା ବଡ଼ ଲହୁଣୀ ପେଟି ପରି ବାସୁଛି ।" ତାଙ୍କ ଭିତରୁ ଅଧିକାଂଶ ମୂଷା ଏହା ଖାଇଲେ ।

ମୂଷା ରାଜା ପାଇଁ ବି ସେମାନେ କେତୋଟି ପେଟି ବୋହିନେଲେ । କିନ୍ତୁ ସୌଭାଗ୍ୟକୁ ସେମାନେ ପହଞ୍ଚିବା ଆଗରୁ ରାଜା ପେଟେ ମିଠାଫଳ ଓ ମାଛ ଖାଇ ସାରିଥିଲା । ତା'ର ଆଉ ଭୋକ ନ ଥିଲା । ବିଷଟିକୁ କାମ କରିବାକୁ କିଛି ସମୟ ଲାଗିଗଲା । ପାହାନ୍ତିଆ ତିନିଟା ବେଳକୁ ଏହାକୁ ଖାଇଥିବା ମୂଷା ମରିବାକୁ ଲାଗିଲେ । ମୂଷା ରାଜା ଏହି ଲହୁଣୀକୁ ସନ୍ଦେହ କଲା । ନିଜ ସାଥିମାନଙ୍କୁ ସେ ସାଙ୍ଗେ ସାଙ୍ଗେ ସତର୍କ ସୂଚନା ପଠାଇଲା ।



ଗୋଟିଏ ଦୁଷ୍ଟ ମୂଷା ଥିଲା । ସେ ଥରେ ତା' ନିଜ ଛୁଆଗୁଡ଼ିକୁ ଖାଇ ଦେଇଥିଲା । ତେଣୁ ରାଜା ତାକୁ ମୃତ୍ୟୁଦଣ୍ଡ ଆଦେଶ ଦେଇଥାଏ । ଏହି ମୂଷାଟି ଉପରେ ସେ ଲହୁଣୀ ପରୀକ୍ଷା କଲା । ନିଜ ପାଇଁ ଅଣା ହୋଇଥିବା କିଛି ଲହୁଣୀ ତାକୁ ସେ ଖାଇବାକୁ ଦେଲା । ମୂଷାଟି ମରିଗଲା । ରାଜା ବିଷର ପ୍ରମାଣ ପାଇଗଲା । ସେ ଦଳେ ଦୂତ ମୂଷାଙ୍କ ହାତରେ ବିଷାକ୍ତ ଲହୁଣୀ ବିଷୟରେ ସୂଚନା ସବୁଆଡ଼େ ପଠାଇଦେଲା ।

ତା' ପରଦିନ ସକାଳେ ୪୫୧୪ଟି ମଲା ମୂଷା ମିଳିଲେ । ଆହୁରି ଅଧିକ ମୂଷା ଗାତ ଭିତରେ ମରି ପଡ଼ିଥିଲେ । ଅନେକ ମୂଷାଙ୍କ ଦେହ ଖରାପ ହୋଇଗଲା ।

ଅଧ୍ୟକ୍ଷ ଏହି ସଫଳତା ଦେଖି ଅତି ଖୁସି ହୋଇଯାଇଥାନ୍ତି । ସେ ଅଧିକା ଲହୁଣୀ କିଣି ମୂଷାଙ୍କୁ ମୂଳପୋଛ କରିବା ପାଇଁ ବାହାରିଲେ । ସେ ଚାର୍ଲସଙ୍କୁ ଏଥିପାଇଁ କିଛି ଅର୍ଥ ବି ଦେଲେ ।

ଦୁଇଦିନ ପରେ ସେମାନେ ଏହି କୌଶଳଟି ପୁଣି ପ୍ରୟୋଗ କଲେ । ସେମାନେ ବିଭିନ୍ନ ଜାଗାରେ ଆଠ ହଜାରଟି ପେଟି ଥୋଇଦେଲେ । ଏଥିରୁ ମାତ୍ର ଦୁଇଟି ପେଟି ଖୋଲାଯାଇଥିବାର ଦେଖିବାକୁ ମିଳିଲା । ସମସ୍ତେ ଜାଣିପାରିଲେ ଯେ ମୂଷାଗୁଡ଼ିକ ଯଥେଷ୍ଟ ଚାଲାକ୍ । ଚାର୍ଲସକୁ ଏହା ବହୁତ ବାଧିଲା । ସେ ନିଶ୍ଚୟ ସଫଳ ହେବ ବୋଲି ଧରିନେଇଥିଲା ।

ଅଧ୍ୟକ୍ଷଙ୍କ ଝିଅକୁ ବାହା ହେବା ଆଶାରେ ସେ ବିବାହ ମୁଦିଟିଏ ବି ବରାଦ କରିସାରିଥିଲା । ବାହାଘରଟି କରାଇବା ପାଇଁ ସେ ଚର୍ଚ୍ଚର ପାଦ୍ରୀଙ୍କ ପାଖକୁ ବି ଲେଖି ସାରିଥିଲା । ଏବେ ତାକୁ ଅଳଙ୍କାର ଦୋକାନୀ ଓ ଚର୍ଚ୍ଚ ପାଦ୍ରୀଙ୍କ ପାଖକୁ ପୁଣି ଲେଖିବାକୁ ହେଲା ଯେ ସେ ବାହା ହେବାକୁ ଚାହେଁ ନାହିଁ । ଆହୁରି ଏକ ଅସୁବିଧା ବି ହେଲା । ମାସେ ଯାଏଁ ତା ଦେହରୁ ଲହୁଣୀର ଗନ୍ଧଟି ଛାଡ଼ିଲା ନାହିଁ । ଏଥିଯୋଗୁଁ ସେ ସ୍କୁଲକୁ ବି ଯାଇପାରିଲା ନାହିଁ । ତାଙ୍କ ଘରେ ତାକୁ ମାସେ ଯାଏଁ କୋଇଲା ଘରେ ଅଲଗା ଶୋଇବାକୁ ପଡ଼ିଲା ।

ଶେଷରେ ଜାକ୍ ତା ପ୍ରୟୋଗଟି କଲା । ତା' କାମଟି ପାଇଁ ଅଧିକ ଅର୍ଥ ଲୋଡ଼ା ଥିଲା । ବାପାଙ୍କ ଠାରୁ ସେ ତିରିଶ ପାଉଣ୍ଡ ଆଣିଥିଲା । କିନ୍ତୁ ଏତିକି ଯଥେଷ୍ଟ ନ ଥିଲା । ସେ ମୋ ଠାରୁ ବି କିଛି ଅର୍ଥ ମାଗିନେଲା । ଆଗରୁ ସେ ବନାଇଥିବା କିଛି ବେତାର ଯନ୍ତ୍ରକୁ ସେ ବିକି ପକାଇଲା । କୌଣସି ମତେ ଅର୍ଥ ଯୋଗାଡ଼ ହୋଇଗଲା । ସେ କିଛି ଅତି ପତଳା ଲୁହାଗୁଣ୍ଡ ଆଣିଲା । ଏହାକୁ ମିଶାଇ ସେ ବିସ୍କିଟ ବନାଇଲା । ଏହି ବିସ୍କିଟଗୁଡ଼ିକୁ ବନ୍ଦରର ବିଭିନ୍ନ ଜାଗାରେ ରଖି ଦିଆଗଲା । ପ୍ରଥମେ ମୂଷାମାନେ ଏଗୁଡ଼ିକୁ ଜମା ଛୁଇଁଲେ ହିଁ ନାହିଁ । କିନ୍ତୁ ପରେ ସେମାନେ ଜାଣିଗଲେ ଯେ, ଏହାକୁ ଖାଇଲେ ବି କିଛି କ୍ଷତି ହେଉ ନାହିଁ । ଏଥର ସେମାନେ ବିସ୍କିଟ ଖାଇ ଚାଲିଲେ ।

ଏହା ଭିତରେ ଜାକ୍ ସାତଟି ବିଶାଳକାୟ ବିଜୁଳି ଚୁମ୍ବକ ଆଣିଥାଏ । ଚୁମ୍ବକଗୁଡ଼ିକୁ ବନ୍ଦରର ବିଭିନ୍ନ ଜାଗାରେ ରଖାଗଲା । ପ୍ରତ୍ୟେକକୁ ଗୋଟିଏ ବଡ଼ ଗାତ ଭିତରେ ରଖାଯାଇଥାଏ । ଏଗୁଡ଼ିକର ଉପର ଧାର ବେଶ୍ ଚିକ୍କଣ ଥିଲା । ଏହା ସହିତ ବିଜୁଳି ତାର ଯୋଡ଼ା ହେଲା , ଯେପରି ଜିଲ୍ଲା ରେଳବିଭାଗ ଓ ପୂର୍ବ ଇଂଲଣ୍ଡରୁ ଏଥିରେ ବିଜୁଳି କରେଣ୍ଟ୍ ଆସିପାରିବ ।

ସୌଭାଗ୍ୟକୁ ଜାକ୍ ଆଗରୁ ଭୂମିତଳ ମୁଖ୍ୟ ବିଜୁଳି ଇଞ୍ଜିନିୟରଙ୍କୁ ଜାଣିଥିଲା । ବେତାର କାମରେ ଉଭୟଙ୍କର ରଚି ଥିଲା । ତେଣୁ ସେ ସୁବିଧାରେ ତାଙ୍କ ବିଭାଗରୁ ବିଜୁଳି ଆଣିପାରିଲା । ସେ ଜାଣିଥାଏ ଯେ, ମୂଷାମାନେ ଯଥେଷ୍ଟ ଲୁହାଗୁଣ୍ଡ ଖାଇଛନ୍ତି । ଏଥର ସେ ଚୁମ୍ବକ ସହ ବିଜୁଳି ଯୋଗ କରିଦେଲା । ତା' ଆଗରୁ ବନ୍ଦରରେ ଥିବା ସବୁ ଲୁହା, ଇସ୍ପାତ ଓ ନିକେଲ୍ ଜିନିଷକୁ କଷି କରି ବନ୍ଧା ଯାଇଥାଏ । ସେହି ରାତିରେ ବନ୍ଦରର ସବୁ କର୍ମଚାରୀଙ୍କୁ ଲୁହା ଲାଗି ନଥିବା ଜୋତା ପିନ୍ଧିବାକୁ ପଡ଼ିଲା । କେବଳ ଉପାଧ୍ୟକ୍ଷ ଜଣେ ଅତି ଧନୀ ଲୋକ ଥିଲେ । ତାଙ୍କ ଜୋତାରେ ସୁନା ଗୋବ ଲାଗିଥିଲା ।

ରାତି ଦେଢ଼ଟା ସୁଦ୍ଧା ଭୂମି ତଳେ ଯିବା ଶେଷ ରେଳଟି ଚାଲିଯାଇଥିଲା । ରେଳଗାଡ଼ିକୁ ଚଳାଉଥିବା ବିଜୁଳି ତାରରୁ ବିଜୁଳି କରେଣ୍ଟ୍‌କୁ ଚୁମ୍ବକ ଆଡ଼କୁ ମୁହାଁଇ ଦିଆଗଲା । ପାଖରେ ପଡ଼ିଥିବା କଳଙ୍କି ଧରା ଯେତେ ଲୁହାକଣ୍ଟା ଓ ଟିଣ ଡ଼ବା ଆଦି ଟାଣି ହୋଇ ଚୁମ୍ବକରେ ଲାଗିଲା । ମୂଷାମାନେ ବି ଟାଣି ହେଲେ । ଭିଡ଼ି ହୋଇ ଆସି ସେମାନେ ଚୁମ୍ବକ ଉପରେ ଲାଗି ରହିଲେ । ଡ଼ବା, କଣ୍ଟା, ଆଦି ଅପେକ୍ଷା ଏମାନେ ବେଶ୍ ଧୀର ଗତିରେ ଆସୁଥିଲେ । ସେମାନଙ୍କ ଦେହରେ ଲୁହାଗୁଣ୍ଡ ଭରି ହୋଇ ରହିଥିଲା । ଚୁମ୍ବକ ତାଙ୍କୁ ଟାଣୁଥାଏ । ଅଳ୍ପ ସମୟ ଭିତରେ ଚୁମ୍ବକ ଥିବା ଗାତଗୁଡ଼ିକ କେବଳ ମୂଷାରେ ହିଁ ଭରିଗଲା ।

ଏଥର ସେମାନେ ଦ୍ୱିତୀୟ ଚୁମ୍ବକ ଆଡ଼କୁ ବିଜୁଳି ଛାଡ଼ିଦେଲେ । କିଛି ସମୟ ଭିତରେ ଗୋଟିଏ ପରେ ଗୋଟିଏ ହୋଇ ସବୁ ଚୁମ୍ବକ କାମ କରିବାରେ ଲାଗିଲା । ମୂଷାଗୁଡ଼ିକ ଟାଣିହୋଇ ଆସି ଗାତରେ ପଡୁଥାନ୍ତି ଓ ଚୁମ୍ବକରେ ଲାଖି ଯାଉଥାନ୍ତି । ସେମାନେ ଗୋଟିଏ ପରେ ଗୋଟିଏ ଚୁମ୍ବକ ବଦଳାଇ ଚାଲିଥିଲେ । ଫଳରେ ଯେଉଁ

ମୂଷା ବି ଗାତରୁ ବାହାରୁଥିଲା ସେ ସିଧା ଚୁମ୍ବକ ଆଡ଼କୁ ଟାଣି ହୋଇ ଆସୁଥିଲା ଓ ଏଥିରେ ଲାଖିଯାଉଥିଲା ।

ମୂଷା ରାଜା ଜାଣିପାରିଲା, କିଛି ଗୋଟାଏ ଅସୁବିଧା ହୋଇଛି । ସେ ବି ଗାତର ଗୋଟିଏ ପଟକୁ ଟାଣି ହୋଇ ଯାଉଥାଏ । ଏହାର କାରଣ ଜାଣିବା ପାଇଁ ସେ ନିଜ ଦୂତମାନଙ୍କୁ ପଠାଇଲା । କିନ୍ତୁ କେହି ବି ଆଉ ବାହୁଡ଼ିଲେ ନାହିଁ । ଶେଷରେ ସେ ନିଜେ ବାହାରିଲା । ଗୋଟିଏ ଚୁମ୍ବକ ତାକୁ ତା' ଗାତ ଭିତରକୁ ଟାଣିନେଲା । ରାତି ପାହିଲା । ସେମାନେ ଚୁମ୍ବକ ଗାତଗୁଡ଼ିକରେ ପାଣି ଭରିଦେଲେ । ଚୁମ୍ବକରେ ଲାଗିଥିବା ସବୁ ମୂଷା ମରିଗଲେ । ଏହି ମୂଷାଙ୍କର ଓଜନ ହେଲା ଦେଢ଼ କୋଟି ଟନ୍ ! ଏମାନଙ୍କୁ ଗଣିବାକୁ କେହି ବି ସାହସ କଲେ ନାହିଁ । ଆଶା କରାଯାଏ, ସେ ଦିନ ପ୍ରାୟ ୭୫ଲକ୍ଷ ମୂଷା ଧରା ପଡ଼ିଥିଲେ ।



ଏହି ଅଭିଯାନଟି ବେଳେ କେତୋଟି ଅଘଟଣ ବି ଘଟିଗଲା । ଆଲ୍‌ଫ ଟିମ୍ପିନ୍‌ସ ନାମକ ଜଣେ ରାତି ଜଗୁଆଳୀ ଥିଲେ । ସେ ସେହି ରାତିରେ କଣ୍ଟା ନ ଥିବା ଜୋତା ପିନ୍ଧିବାକୁ ଭୁଲି ଯାଇଥିଲେ । ତେଣୁ ତାଙ୍କ ପାଦ ଚୁମ୍ବକଆଡ଼କୁ ଟାଣି ହୋଇଗଲା । ମୂଷା ଗାତ ଆଡ଼କୁ ଘୋଷାରି ହେଉଥିବା ଅବସ୍ଥାରେ ସେ ଜୋତାକୁ ଖୋଲିବାରେ

ଲାଗିଥିଲେ । ଗାତଟି ପାଖରେ ପହଞ୍ଚିଲା ବେଳକୁ ସେ ଜୋତା ହଳକ ଖୋଲି ଦେଇ ପାରିଲେ । କିନ୍ତୁ ତାଙ୍କର ପ୍ରତି ପାଦକୁ ଗୋଟିଏ ଲେଖାଏଁ ମୂଷା ପ୍ରାଣ ବିକଳରେ ଜାବୁଡ଼ି ଧରିଥିଲେ । ମୂଷା ଦୁଇଟି ଏତେ ଜୋର୍‌ରେ ଟାଣି ହେଲେ ଯେ, ଟିମ୍ମିନ୍‌ସଙ୍କ ପାଦ ଆଙ୍ଗୁଠି ସବୁ ଛିଡ଼ିଗଲା । ଏହା ମୂଷା ସହ ଯାଇ ଚୁମ୍ବକରେ ଲାଗିଲା । ଏବେ ତାଙ୍କର ଦୁଇ ପାଦରେ ଆଙ୍ଗୁଠି ନାହିଁ । ତେଣୁ ତାଙ୍କୁ ଏବେ ଆଗ ଅପେକ୍ଷା ଦୁଇଟି ଛୋଟ ବୁଟ୍ ପିନ୍ଧିବାକୁ ପଡୁଛି ।

ଆଉ ଜଣେ ଜଗୁଆଳୀ ଅଳପକେ ବଞ୍ଚିଗଲେ । ତାଙ୍କ ନାଁ ବର୍ଟ୍ ହିଗ୍‌ସ୍ । ଯୁଦ୍ଧ ଆଗରୁ ସେ ଜଣେ ବିଖ୍ୟାତ ବିଲିଆର୍ଡ୍ ଖେଳାଳୀ ଥିଲେ । ତାଙ୍କ ମୁଣ୍ଡ ଭିତରେ ଟିଣ ଖୋଳପା ଖଣ୍ଡଟିଏ ପଶିଗଲା । ଏହା ତାଙ୍କର ମସ୍ତିଷ୍କକୁ ଭେଦି ଯାଇଥିଲା । ସେ ଆଉ ବିଲିଆର୍ଡ୍‌ସ ଖେଳି ପାରିଲେ ନାହିଁ । ଡ଼ାକ୍ତରମାନେ ବହୁତ ଚେଷ୍ଟା କରି ବି ଏହାକୁ ବାହାର କରିପାରିଲେ ନାହିଁ । କିନ୍ତୁ ଜାକ୍ ଚୁମ୍ବକଟିକୁ ତାଙ୍କ ମୁଣ୍ଡ ଆଡ଼କୁ ମୁହାଁଇଲା । ଆଶ୍ଚର୍ଯ୍ୟଜନକ ଭାବେ ଟିଣ ଖୋଳଟି ଚୁମ୍ବକ ଦ୍ୱାରା ଟାଣି ହୋଇ ତାଙ୍କ ମୁଣ୍ଡରୁ ବାହାରି ଆସିଲା । ଏଥର ତାଙ୍କର କାମିକା ମୁଣ୍ଡଟି ପୁଣି ସଚଳ ହୋଇପାରିଲା । ଏବେ ସେ ପୁଣି ତାଙ୍କ ଅଞ୍ଚଳର ବିଲିଆର୍ଡ୍ ଚାମ୍ପିଅନ୍ ହୋଇପାରିଲେ ।

ତା' ପର ରାତିରେ ସେମାନେ ପୁଣି ଚୁମ୍ବକ ଲଗାଇଲେ । ପୁଣି ଶହେ ଟନ୍ ହେବ ମୂଷା ଧରାପଡ଼ିଲେ । ସେମାନଙ୍କ ରାଜା ମରି ଯାଇଥାଏ । କ'ଣ କରିବେ ଜାଣି ପାରୁ ନ ଥାନ୍ତି । ତୃତୀୟ ରାତିରେ ପୁଣି ଗୁଡ଼ିଏ ମୂଷା ଧରା ହେଲେ । ସେତେବେଳକୁ ଜିଇଁଥିବା ଅଳ୍ପ କିଛି ମୂଷା ପ୍ରବଳ ଭାବେ ଡ଼ରି ଯାଇଥାନ୍ତି । ସେମାନେ ପ୍ରାଣ ବିକଳରେ ସେହି ଜାଗା ଛାଡ଼ି ଦଉଡ଼ି ପଳାଇଲେ । କେତେକ ଜାହାଜରେ ଚଢ଼ି ବିଦେଶକୁ ପଳାଇଲେ । କିଛି ମୂଷା ଲଣ୍ଡନକୁ ପଳାଇଗଲେ । ସେଠାରେ ବି ସେମାନେ ଲୋକଙ୍କୁ ଅଡୁଆରେ ପକାଇଲେ । ବନ୍ଦରରେ ଆଉ ଗୋଟିଏ ବି ମୂଷା ରହିଲେ ନାହିଁ । ଚତୁର୍ଥ ରାତିରେ ଆଉ ଗୋଟିଏ ବି ମୂଷା ଧରାପଡ଼ିଲା ନାହିଁ । ତା' ପରଦିନ କୁକୁର ଓ ନେଉଳ ସାହାଯ୍ୟରେ ସେମାନେ ମୂଷାଧରା ଅଭିଯାନ ଚଳାଇଲେ । କିନ୍ତୁ କେଉଁଠି ଗୋଟିଏ ବି ମୂଷା ପାଇଲେ ନାହିଁ ।

ଜାକ୍ ସ୍ମିଥ୍ ଲକ୍ଷେ ପାଉଣ୍ଡ ପୁରସ୍କାର ପାଇଲା । ଅଧ୍ୟକ୍ଷଙ୍କ ଝିଅକୁ ବି ସେ ବାହାହେଲା । ଦୁହିଁଙ୍କର ବାହାଘର ସମୁଦ୍ର ଭିତରେ ଗୋଟିଏ ଜାହାଜରେ ଆୟୋଜିତ ହେଲା । ଜାକ୍ ଚର୍ଚ୍ଚରେ ବାହା ହେବାକୁ ଚାହିଁ ନ ଥିଲା । ପଞ୍ଜିକରଣ ବିବାହକୁ ବି ସେ ପସନ୍ଦ କଲା ନାହିଁ । ସେ ଗୋଟିଏ ଜାହାଜ ଭଡ଼ା ନେଲା । କୂଳ ଠାରୁ ଅଢ଼େଇ ମାଇଲ ମଧ୍ୟରେ ବିବାହ କରିବା ମନା ଥିଲା । ତେଣୁ ତିନି ମାଇଲ ଦୂରରେ ଜାହାଜର କପ୍ତାନ ତାଙ୍କୁ ବାହା କରାଇଲେ । ସେମାନଙ୍କର ଦୁଇଟି ପୁଅ ଓ ଦୁଇଟି ଝିଅ ଜନ୍ମ ହେଲେ । ବି.ବି.ସି. ରେଡ଼ିଓ କେନ୍ଦ୍ରରେ ଜାକ୍ ଜଣେ ଇଞ୍ଜିନିୟର ହେଲା । ସେ ଯେତିକି ଅର୍ଥ ପୁରସ୍କାର ପାଇଥିଲା, ସେଥିରେ ସାରା ଜୀବନ ଖୁସିରେ ଚଳି ଯାଇପାରିଥାନ୍ତା । କିନ୍ତୁ ବେତାର ପ୍ରତି ତା'ର ଏକ ସ୍ୱତନ୍ତ୍ର ଆକର୍ଷଣ ଥିଲା । ସେ ଜୀବନସାରା ତାର ବେତାର ଗବେଷଣା ଜାରି ରଖିଲା ।

ଜାକ୍‌ର ଭଉଣୀ ବନ୍ଦର ଉପାଧ୍ୟକ୍ଷଙ୍କୁ ବାହା ହେଲା । ତାଙ୍କ ପରି ସେ ବି ଜଣେ ଡ୍ୟୁକ୍ (ରାଜବଂଶ) ବନିଗଲା । ଆଜିକାଲି ଡ୍ୟୁକ୍‌ମାନଙ୍କର ଆଗପରି ଏତେ ବେଶୀ ଗୁରୁତ୍ୱ ନାହିଁ । ସ୍ୱାମୀଙ୍କ କୋଟରେ ସୁନା ଗୋବ ପରି ତା' କୋଟରେ ହୀରାର ଗୋଇଠି ଲାଗିଛି । ଜିମ୍ ଓ ଚାର୍ଲସଙ୍କ ଖବର କ'ଣ ? ନିଜ ରୁଚିର କାମ କରିବା ପାଇଁ ଦୁହିଁଙ୍କୁ ଜାକ୍ ଯଥେଷ୍ଟ ପଇସା ଦେଲା । ଏହାକୁ କାମରେ ଲଗାଇ ଜିମ୍ ଜଣେ ଭଲ ଯାଦୁକର ବନିପାରିଲା । ଚାର୍ଲ୍‌ସ ବିଶ୍ୱବିଦ୍ୟାଳୟରେ ପଢ଼ିଲା । ସେ ରସାୟନ ବିଜ୍ଞାନରେ ଜଣେ ପ୍ରଫେସର୍ ହେଲା । ମୁଁ ବି ଜଣେ ପ୍ରଫେସର୍ । ତାକୁ ମୁଁ ଭଲ କରି ଜାଣେ । ସେମାନେ ସମସ୍ତେ ଖୁସିରେ ରହିଲେ ।



# ଲେଖକ ଜଣକ କିଏ ?

ଜେ.ବି.ଏସ୍. ହାଲଡେନ୍ ଜଣେ ବିଖ୍ୟାତ ଇଂରାଜୀ ବୈଜ୍ଞାନିକ ଥିଲେ । ସେ ଇଂଲଣ୍ଡରେ ଜନ୍ମ ହୋଇଥିଲେ । କିନ୍ତୁ ଭାରତର ନାଗରିକତ୍ୱ ଗ୍ରହଣ କରିଥିଲେ । ବିବର୍ତ୍ତନବାଦର ନିୟମ, ମଣିଷର ଗଠନ ଓ ଜେନେଟିକ୍ସ ବିଷୟରେ ତାଙ୍କ ଗବେଷଣା ଉଚ୍ଚ ପ୍ରଶଂସିତ ହୋଇଥିଲା । କିନ୍ତୁ ବିଜ୍ଞାନର ଚଳିତ ଅବସ୍ଥା ତାଙ୍କୁ ଭଲ ଲାଗୁ ନ ଥିଲା । ସମାଜରେ ବିଜ୍ଞାନର ଲୋକପ୍ରେମୀ ଉପଯୋଗ ପାଇଁ ସେ ଚିନ୍ତା କରୁଥିଲେ । ତାଙ୍କର ସାଥି ଥିଲେ ବିଖ୍ୟାତ ଜନବିଜ୍ଞାନୀ ଜେ.ଡ଼ି.ବର୍ଣ୍ଣାଲ୍ ଓ ଯୋସେଫ୍ ନିଡାମ୍ । ବିଜ୍ଞାନ କେବଳ ଶୃଙ୍ଖଳା ଗବେଷଣାଗାର ଭିତରେ ଝଟକିବାକୁ ସେମାନେ ପସନ୍ଦ କରୁ ନ ଥିଲେ । ସେମାନେ ଆହୁରି ବୁଝିଥିଲେ ଯେ ବିଜ୍ଞାନ କେବଳ ପାଶ୍ଚାତ୍ୟର ଅବଦାନ ନୁହେଁ । ପ୍ରାଚ୍ୟ ଦେଶଗୁଡ଼ିକର ଲୋକ ବିଜ୍ଞାନ ଯଥେଷ୍ଟ ଆଗେଇଥିଲା ।

ତେଣୁ ଏହି ସମାଜପ୍ରେମୀ ବିଜ୍ଞାନୀମାନେ ବିଜ୍ଞାନର ଏକ ସ୍ପଷ୍ଟ ରୂପ ଓ ଜୀବନପ୍ରେମୀ ଦିଗକୁ ଆଙ୍କିବାକୁ ଚେଷ୍ଟା କରିଥିଲେ । ଲୋକଙ୍କ ଘରେ, ଗାଁରେ ଓ ସମାଜରେ ଚାଲିଥିବା ନିତିଦିନିଆ ବିଜ୍ଞାନ ପରଖକୁ ସେମାନେ ବୁଝିବାରେ ଲାଗିଥିଲେ । ଯୋସେଫ ନିଡାମ୍ ଜୀବନର ଅଧିକ ଅଂଶ ଚୀନ୍‌ରେ କଟାଇ ଏହି ଲୋକ ବିଜ୍ଞାନରେ ଗବେଷଣା ଚଳାଇଥିଲେ । ଜେ.ଡ଼ି. ବର୍ଣ୍ଣାଲ୍ ବିଭିନ୍ନ ଦେଶରେ ବିଜ୍ଞାନର ସାମାଜିକ ଦାୟିତ୍ୱ ଓ ଦିଗକୁ ବଖାଣିବାରେ ଲାଗିଲେ । ଏ ସବୁର ସଙ୍କଳନରେ ଏକ ବିଖ୍ୟାତ ବହି ରୂପ ପାଇଲା । ତାହା ହେଉଛି " ବିଜ୍ଞାନର ଇତିହାସ " ( Science in History ) ।

ହାଲ୍‌ଡ଼େନ୍ ଭାରତରେ ନାଗରିକ ହୋଇ ଏହି ଚେଷ୍ଟା ଚଳାଇଲେ । ଓଡ଼ିଶା ସହ ତାଙ୍କର ସମ୍ପର୍କ ସ୍ୱତନ୍ତ୍ର : ଜୀବନର ଶେଷ ଭାଗ ସେ ଆମ ଓଡ଼ିଶା ମାଟିରେ କଟାଇଥିଲେ । ଏହି ମାଟିରେ ସେ ଛାଡ଼ି ଯାଇଥିବା ଜନପ୍ରେମୀ ବିଜ୍ଞାନଧାରାଟିର ଯତ୍ନ ନେବା ଆମର ଦାୟିତ୍ୱ ।

ଆଜି ସେ ନାହାନ୍ତି । (ନିଡାମ୍ ବି ବର୍ଷେ ତଳେ ଆଖି ମୁଜିଥିଲେ ) ବିଜ୍ଞାନର ଗବେଷଣାମୂଳକ ପ୍ରବନ୍ଧ ଛଡ଼ା, ସେ ଅନେକ ସୃଜନଶୀଳ କାହାଣୀ ଓ ସରଳ

ପ୍ରବନ୍ଧ ଲେଖିଛନ୍ତି । ଏଗୁଡ଼ିକ ଭିତରୁ " ମୋ ସାଙ୍ଗ - ଲିକି " ( My Friend Mr. Leakey) ବହିଟି ବହୁତ ଆଦର ପାଇଛି । ୧୯୩୦ ମସିହାରେ ଏହା ପ୍ରଥମେ ପ୍ରକାଶ ପାଇଥିଲା । 'ମୂଷା' କାହାଣୀଟି ଏହି ବହିରୁ । ଆଶା, ହାଲଡ଼େନ୍‌ଙ୍କ ବିଚାରଧାରା ଓ ସୃଜନୀ ମନକୁ ବୁଝିବାରେ ଏହା ଆମକୁ ଖୋରାକ ଯୋଗାଇବ ।



